ବୃହତ୍

# ହରିଅର୍ଜୁନ କଳି ।

ରଚକ ଓ ପ୍ରକାଶକ—

ଶ୍ରୀ ଲାଲା ଗୋପୀନାଥ ଗୁପ୍ତ

ପ୍ରଥମ ସଂସ୍କରଣ ।

ପ୍ରାପ୍ତିସ୍ଥାନ—

ଶ୍ରୀ ରାଧାକୃଷ୍ଣ ବସୁ ଏମ୍. ଏ.

ମାଣିକ ଘୋଷ ବଜାର,

ପୋଃ ଅଃ ଚାନ୍ଦନୀଚୌକ—କଟକ ।

ମୂଲ୍ୟ ଟ ° ୵ ଦୁଇଅଣା ମାତ୍ର ।

# ବୃହତ

# ହରିଅର୍ଜ୍ଜୁନ କଳି ।

( ଗୁଣସାଗର ବୃତ୍ତେ )

ଜୟ ରାଧାକାନ୍ତ ଅଚ୍ୟୁତ ଅନନ୍ତ ଗୋବନ୍ଦ ଗୋପାଳ ହରି ।
ମୁକୁନ୍ଦ ମାଧବ ଶ୍ରୀକୃଷ୍ଣ କେଶବ ଜୟ ଦେବ ଦଇତାରି ॥
ଜୟ ଦୀନବନ୍ଧୁ ଜୟ କୃପାସିନ୍ଧୁ ଜୟ ଶ୍ରୀ ଗୋପୀମୋହନ ।
ଜୟ କଂସଅରି ଜୟ ଗିରିଧାରି ଜୟ ଆରତଭଞ୍ଜନ ॥
ଜୟ ଲକ୍ଷ୍ମୀପତି ଜୟ ସୀତାପତି ଜୟ ଜୟ ଆଦିକନ୍ଦ ।
ଜୟ ହିରଣ୍ୟକଶିପୁ ଦୈତ୍ୟଅରି ଜୟ ଯଦୁକୁଳ ଚନ୍ଦ ॥
ଶ୍ରୀମଧୁସୂଦନ ଶ୍ରୀନନ୍ଦନନ୍ଦନ ଜୟ ଜୟ ବନମାଳୀ ।
ଜୟ ନାରାୟଣ ପତିତପାବନ ଜୟ ଜୟ ଦେବ ହଳୀ ॥
ଅହେ ନରହରି ଗୋବର୍ଦ୍ଧନଧାରି କରଛି ହୃଦେ ମାନସ ।
ଶ୍ରୀହରି ଅର୍ଜ୍ଜୁନ କଳିର ବିଧାନ କରିବାକୁ ପରକାଶ ॥
ଯେବେ ହେବ ତୁମ୍ଭ ହୃଦୟରେ ଦୟା ହେବ ମୋର ପୂର୍ଣ୍ଣକାମ ।
ପଶିଲି ଶରଣ ହେ କଞ୍ଜନୟନ ଗୋପୀନାଥ ମୋର ନାମ ॥
ଅହେ ଜଗନ୍ନାଥ ଅନାଥର ନାଥ ଜୟ ଜୟ ଚକ୍ରଧର ।
କର ମୋତେ ଦୟା ଅହେ ଚକ୍ରବାହା ମାନସ ପୂରୁ ମୋହର ॥
ଅହେ ସାଧୁଜନମାନେ ଦେଇ ମନ ଧୀରେ ଶୁଣ ଏ ଚରିତ ।
କଳିର କଳୁଷ ବାଧା ନ ଲାଗିବ ପାପରୁ ହେବ ମୁକତ ॥
ଶ୍ରୀକୃଷ୍ଣ ମହିମା କେ ବର୍ଣ୍ଣି ପାରିବ ଅନନ୍ତ ଭକ୍ତ ସୋଦର ।
ନାନାରୂପ ହୋଇ ଭୂଭାର ନାଶିଲେ ଯେହୁ ବ୍ରହ୍ମାଣ୍ଡଠାକୁର ॥

ବ୍ରହ୍ମଶାପ ଯୋଗୁଁ ରାଜା ପରୀକ୍ଷିତ ମନେ ହୋଇ ଦୁଃଖୀ ଅତି ।
ଏମନ୍ତ ସମୟେ ପ୍ରବେଶିଲେ ଯାଇଁ ମହାମୁନି ଶୁକ ଯତି ॥
ଦେଖି ନରସାଇଁ ପୁଲକିତ ହୋଇ ତାଙ୍କ ଚରଣ ପୂଜିଲେ ।
ସାଷ୍ଟାଙ୍ଗେ ପ୍ରଣାମ କରି ନରସାଇଁ ଆସନରେ ବସାଇଲେ ॥
ସନ୍ତୁଷ୍ଟ ହୋଇଣ ଶୁକ ମହାଯତି ବୋଲନ୍ତି ହେ ରାଜା ଶୁଣ ।
ଅଜ୍ଞାନରେ କିପାଁ ବିପ୍ରେ ଅପମାନ କଲ ହୋଇ ପୁଣ୍ୟବାନ ॥
ଶୁଣି ଏ ଭାରତୀ ବୋଲେ ନରପତି ଶୁଣ ତାପସପ୍ରବର ।
ଅହଙ୍କାର କରି ନରକେ ପଡ଼ିଲି ନ କରି ଧର୍ମବିଚାର ॥
ଆହେ ମୁନିବର ପରିତ୍ରାଣ କର କୃପା କରି ବ୍ରହ୍ମଶାପୁଁ ।
କି ଉପାୟ କଲେ ଏ ବିପଦୁଁ ଭଲେ ପାରିହେବି ମନ୍ତ୍ରସ୍ତାପୁ ॥
ଶୁକଦେବ ଭଣି ଶୁଣ ନୃପମଣି ମନଦୁଃଖ ତ୍ୟାଗ କର ।
କହୁଛି ଉପାୟ ହୋଇବ ନିଶ୍ଚୟ ତୁମ୍ଭେ ନିଷ୍ପାପ ଶରୀର ॥
ଭାଗବତ କଥା ଶ୍ରୀକୃଷ୍ଣ ଚରିତ ଶୁଣ ହୋଇ ଏକଚିତ୍ତ ।
ପାପ ତାପ ଆଦି ନିଶ୍ଚେ ନାଶଯିବ ଧର୍ମ ହୋଇବ ପ୍ରାପତ ॥
ଶୁଣି ନରପତି ଆନନ୍ଦିତ ହୋଇ ମୁନିଙ୍କ ଚରଣ ଧରି ।
ଯେବେ କୃପା କଲ ଭାଗବତ କଥା ମୋତେ କହିବା ବିସ୍ତାରି ॥
ରାଜାଙ୍କ ବିନତି ଦେଖି ଶୁକଯତି କହନ୍ତି ହେ ନୃପ ଶୁଣ ।
ଯେଉଁ ଭାବେ କୃଷ୍ଣ ଅର୍ଜୁନଙ୍କ କଳି କହିବା ତାର ବିଧାନ ॥
ଯଦୁ ନଗ୍ରେ ଜାତ ନାମ ସତ୍ରାଜିତ ଧନମଣିଙ୍କୁ ସେବିଲେ ।
ଦ୍ୱାଦଶ ବରଷ ଅନ୍ତେ ଧନନାଥ ତାଙ୍କୁ ପ୍ରସନ୍ନ ହୋଇଲେ ॥
ନିକଟେ ପ୍ରବେଶ ହୋଇଣ ଧନେଶ ବୋଲନ୍ତି ହେ ସତ୍ରାଜିତ ।
ସେବାରେ ସନ୍ତୋଷ ହେଲି ମୁହିଁ ତୋର ଆଜୁଁ ତୁ ମୋହର ମିତ ॥
ଆନନ୍ଦେ ତପନ ହୋଇଣ ପ୍ରସନ୍ନ କଣ୍ଠୁ କାଢ଼ି ରତ୍ନମଣି ।
ଆଲିଙ୍ଗନ କରି ସତ୍ରାଜିତ ବୀର ଗଳେ ଲମ୍ବାଇଲେ ପୁଣି ॥

ପାଇଣ ସ୍ୟମନ୍ତ ମଣି ସତ୍ରାଜିତ ଗୃହେ ଆସିଣ ମିଳିଲା ।
ନିତ ଅଷ୍ଟଭାର ସୁବର୍ଣ୍ଣ ମଣିରୁ ପ୍ରସବ ହେଲା ଦେଖିଲା ॥
ସ୍ୟମନ୍ତ ମଣିକୁ ଯତନରେ ନେଇ ରଖିଲା ଦେବମନ୍ଦିରେ ।
ଦେବଙ୍କ ସଙ୍ଗତେ ମଣିବରେ ନିତ୍ୟେ ପୂଜୁଥାନ୍ତି ବିପ୍ରବରେ ॥
କେତେଦିନ ଅନ୍ତେ ପ୍ରଭୁ ଗୋପୀନାଥ ସତ୍ରାଜିତକୁ ଡକାଇ
ବୋଲନ୍ତି ମଣିକୁ କିଛିଦିନ ପାଇଁ ଉଗ୍ରସେନେ ଦିଅ ତୁହି ॥
ଗୋବିନ୍ଦଙ୍କ ଠାରୁ ଶୁଣିଣ ଏ ଗିର ମଉନ ହୋଇ ରହିଲା ।
ଦେବା ନ ଦେବାର କିଛି ନ କହିଣ ଗୃହକୁ ଫେରିଣ ଗଲା ॥
ଲୋଭେ ବଶୀଭୂତ ହୋଇ ସତ୍ରାଜିତ ମନେ ଭାବେ ହୋଇ ତୁନି ।
ଅଷ୍ଟଭାର ସ୍ୱର୍ଣ୍ଣ ଭଣ୍ଡାରେ ମୋହର ଦିଅଇ ଯେ ରତ୍ନମଣି ॥
କେମନ୍ତେ ମୁଁ ତାକୁ ଉଗ୍ରସେନେ ଦେବ ଉଚିତ ନୁହଇ ମୋର ।
ବାଞ୍ଛିଥିବା ଯାଏ ମଣି ମୁଁ ନ ଦେବ ଯାହା କରୁ ଚକ୍ରଧର ॥
ଏଥୁ ଅନନ୍ତରେ ଶୁଣ ନରନାଥ ପ୍ରସେନଜିତ ତାର ଭ୍ରାତ ।
କଣ୍ଠେ ମଣି ଭିଡ଼ି ଅଶ୍ୱରେ ଚଢ଼ିଣ ବନକୁ ଗଲା ତ୍ୱରିତ ॥
ଆନନ୍ଦିତ ମନେ ମୃଗ ମାରିବାକୁ ପଶିଲା ଗହନ ବନେ ।
ଅଶ୍ୱ ଶବ୍ଦ ପାଇ ଏକ ପଶୁରାଜ ମିଳିଲା ତା ସନ୍ନିଧାନେ ॥
ଅଶ୍ୱ ସହିତରେ ମାରିଣ ତାହାକୁ ମଣି ତାର କଣ୍ଠୁ ନେଲା ।
ପର୍ବତ ଗୁହାକୁ ଗମନ୍ତେଣ ଖରେ ଜାମ୍ବବ ତାହା ଦେଖିଲା ॥
ସିଂହକୁ ଦେଖିଣ ଭଲ୍ଲୁକ ରୂପରେ ତା ସଙ୍ଗେ କଲା ସମର
ତକ୍ଷଣି ଚପି ତାକୁ ମାରି ବଜ୍ରମୁଷ୍ଟି ଚୂର୍ଣ୍ଣ କଲା ତାର ଶିର ॥
ମଣି ଘେନି କରେ ପଶିଲା ବିଳରେ ପାତାଳେ ଯାଇଁ ମିଳିଲା ।
ସନ୍ତୋଷ ମନରେ ମଣି ଘେନି କରେ ପୁଣି କଣ୍ଠେ ଲମ୍ବାଇଲା ॥
ଏଣେ ସତ୍ରାଜିତ ଭ୍ରାତାର ବିଳମ୍ବେ ମନେ ହୋଇ ବଡ଼ ଦୁଃଖୀ ।
ମନ ଛନ୍ନ ଛନ୍ନ ବିକଳ ହୋଇଣ ପଥକୁ ଗୃହେଁ ନିରେଖି ॥

ପୁଣି ମନେ ଭାବେ, କିମ୍ପା ନ ଅଇଲା କି ଅବା ହେଲା ପ୍ରମାଦ ।
ବାଳକେ କେବେ ବନ କର ବିଗୁରଭି କି ଅବା ହେଲା ଆପଦ ॥
ପୁଣି ବିଗୁରଭି ପ୍ରଭୁ ଚକ୍ରଧର ମାଗିଥିଲେ ମୋତେ ମଣି ।
ଦେବା ନ ଦେବାର କିଛି ନ କହିଣ ଅଇଲି ହୋଇଣ ତୁନି ॥
କି ଅବା ଶ୍ରୀହରି ମୋତେ ମାୟା କରି ଗୁପ୍ତେ ବନକୁ ଯାଇଣ ।
ମୋହର ଭ୍ରାତାକୁ ପ୍ରାଣେ କରି ହତ ମଣିକୁ କଲେ ହରଣ ॥
ସତ୍ରାଜିତ ବାଣୀ ସର୍ବଜନେ ଶୁଣି ବସି କରନ୍ତି ବିଗୁର ।
କିମ୍ପାଇଁ ଗୋବିନ୍ଦ କଲେ ଏଡ଼େ କର୍ମ ଏ ନୁହେ ଧର୍ମବିଗୁର ॥
ଏହିପରି ସର୍ବେ କୁହାକୋହି ହୋନ୍ତେ ଶୁଣିଲେ ତାହା ଶ୍ରୀହରି ।
ଲୋକ ଅପବାଦ ଯୋଗୁଁ ଆନନ୍ଦକନ୍ଦ ସର୍ବ ଜନଙ୍କୁ ହକାରି ॥
ବୋଲନ୍ତି ବଚନ ଶୁଣ ସର୍ବଜନ ହେଲା ବଡ଼ ଅପମାନ ।
ପ୍ରସେନାଜିତଙ୍କୁ ଖୋଜିବା ନିମନ୍ତେ ବନେ ଯିବା ସର୍ବଜନ ॥
ଶ୍ରୀକୃଷ୍ଣ ବଚନେ ମିଳି ଜନମାନେ ସଙ୍ଗେ ଘେନି ବନମାଳୀ ।
କେତେକ ଦୂର ଖୋଜିଣ ଯାଆନ୍ତେ ପ୍ରସ୍ନ ହତ ସ୍ଥାନେ ମିଳି ॥
ଅଶ୍ବ ସହିତରେ ମରି ପଡ଼ିଅଛି ଦେଖିଣ ହେଲେ ଚକିତ ।
ସିଂହ ପାଦ ଚିହ୍ନ ଦେଖିଣ ବୋଲନ୍ତି ପଶୁରାଜ କଲା ହତ ॥
ତାର ପାଦଚିହ୍ନ ଦେଖିଣ ମୋହନ ଥୋକାଏକ ଦୂର ଗଲେ ।
ଘୋର ବନମଧେ ଗିରିର ନିକଟେ ସିଂହ ମରଣ ଦେଖିଲେ ॥
ସିଂହର ମରଣ ଅନୁସରି ସର୍ବେ ଦେଖି ଭଲ୍ଲୁକ ଚରଣ ।
ଚିହ୍ନକୁ ଗୁହିଁ ସେ ଯାନ୍ତେ କେତେଦୂରେ ବିଳେକ ଦେଖିଲେ ପୁଣ ॥
ଚରଣର ଚିହ୍ନ ପଡ଼ିଅଛି ବିଳେ ପଶେ ଘୋର ଅନ୍ଧକାର ।
ଉପାୟ ନ ଦେଖି କି କରିବା ବୋଲି ସମସ୍ତେ ହେଲେ କାତର ॥
ବୋଲନ୍ତି ମୋହନ ସର୍ବ ପ୍ରଜାଜନ ସାବଧାନେ ଏହିଠାରେ ।
ବସ ମୁହିଁ ଆଜ ଲୋକଅପବାଦେ ପଶିବି ବିଳ ମଧରେ ॥

ଏମନ୍ତ କହୁଣ ଦେବ ଜନାର୍ଦ୍ଦନ ଚଳରେ ପଶିଲେ ଯାଇଁ ।
ଦୁର୍ଗମ ଅନ୍ଧାର ପଥରେ ଗମନ୍ତ ମନଦୁଃଖେ ଭବଗ୍ରାହୀ ॥
ଏରୂପରେ କେତେ ଦୂର ଚଳଯାନ୍ତେ ଦେଖିଲେ ପାତାଳପୁର ।
ଜାମ୍ବବ ନାମେଣ ଏକଇ ବାନର କରଅଛି ତହିଁ ଘର ॥
ତାର ପୁତ୍ରୀ କଣ୍ଠେ ରତ୍ନମଣି ଥିବା ଦୂରୁଁ ଦେଖି ପୀତବାସ ।
ମଣିକି ଲଭିବା ଆଶେ ଦଇତାରି ମିଳିଲେ ତାହାର ପାଶ ॥
ଅପୂର୍ବ ରୂପ ଦେଖିଣ ଜଣେ ଧାତ୍ରୀ ପୁତ୍ରୀକୁ କୋଳରେ ଧରି ।
ଭୟରେ କାତର ହୋଇ ଉଚ୍ଚସ୍ୱରେ ଡାକଇ ଚିତ୍କାର କରି ॥
ସେ ଚିତ୍କାର ନାଦ ଶୁଣିଣ ଜାମ୍ବବ ଭିତରୁ ଧାଇଁ ଅଇଲା ।
ମହା ଭୟଙ୍କର ରୂପ ଧରି ବେଗେ ପୁତ୍ରୀର ପାଶେ ମିଳିଲା ॥
ଦେଖିଲା ଶ୍ରୀକୃଷ୍ଣ ଉଭା ହୋଇଛନ୍ତି ହୃଦରେ ଶ୍ରୀବତ୍ସ ଚିହ୍ନ ।
ନିଜ ନାଥ ଗୁହିଁ ଚିହ୍ନି ନ ପାରଇ ମାୟା କଲେ ସେ ମୋହନ ॥
ଇତର ଲୋକ ପରାୟେ ମଣି କୋପେ ଧାଇଁଲା ସେ ଜାମ୍ବବନ୍ତ ।
କ୍ରୋଧଭରି ହୋଇ ଭଲ୍ଲୁକ ସ୍ୱଭାବେ ଧଇଲା ଶ୍ରୀକୃଷ୍ଣ ହସ୍ତ ॥
ହରିଙ୍କ ମହିମା ନ ଜାଣି ଜାମ୍ବବ ତକ୍ଷଣେ ପାଦକୁ ଛନ୍ଦ ।
ଭୁଜ ଯୁଗଳେ ଭୁଜକୁ ବାନ୍ଧିକରି ହୃଦେ ହୃଦ ଦେଲା ରୁନ୍ଧ ॥
ମାଲବନ୍ଧେ ଘୋର ଯୁଦ୍ଧ ଆରମ୍ଭିଲା ବଳେ ଅଟେ ବଳୀଆର ।
ବୃକ୍ଷ ପାଷାଣ ନାନାବିଧ ଆୟୁଧ ଧରି କରଇ ସମର ॥
କୋପେ ଅଷ୍ଟାଦଶ ଦିନ ବେଳଜନ କଲେ ଘୋର ରଣରଙ୍ଗ ।
କୃଷ୍ଣ ବଜ୍ରମୁଷ୍ଟି ପ୍ରହାରେ ଜାମ୍ବବ ନ ସହିଣ ହେଲା ଭଙ୍ଗ ॥
ଶ୍ରୀକୃଷ୍ଣ ବଦନ ଗୁହିଁ ଜାମ୍ବବନ୍ତ ପାଇଲେକ ଦିବ୍ୟଜ୍ଞାନ ।
ବୋଲଇ ସେ ନାଥ କ୍ଷମା ମୋତେ କର ଅଟେ ମୁହିଁ ପଶୁହୀନ ॥
ଅନାଦି ଅନନ୍ତ ପରମପୁରୁଷ ପରମାତ୍ମା ଯୋଗେଶ୍ୱର ।
ସେତୁବନ୍ଧ ବାନ୍ଧି ଲଙ୍କାଦୁର୍ଗ ଧ୍ୱଂସି ନାଶ କଲ ଦଶଶିର ॥

ଏମନ୍ତ ମହିମା ଭୋ ନାଥ ତୋହର ମୁଁ ସ୍ତବ ନ ଜାଣି ତୋତେ ।
ଦୋଷ କ୍ଷମା କର ମୁଁ ତୋର କିଙ୍କର ତ୍ରାହି କର ପ୍ରଭୁ ମୋତେ ।।
ଶୁଣିଣ ଗୋବିନ୍ଦ ହସି ମନ୍ଦ ମନ୍ଦ ଜାମ୍ବବକୁ ଦୟା କରି ।
ମେଘ ଗମ୍ଭୀର ପ୍ରାୟେ ବାଣୀ ଭାଷନ୍ତ ତାର ଦୂର କରି ଡର ।।
ଶୁଣ ଆହେ ବୀର ଯେ ନିମନ୍ତେ ମୋର ତୋର ପୁରେ ଆଗମନ ।
ତୋର ପୁତ୍ରୀକଣ୍ଠେ ଯେଉଁ ମଣି ଅଛି ତା ଦେଇ ତୋଷ ମୋ ମନ ।।
ଏ ମଣି ନିମନ୍ତେ ଯଦୁପୁରେ ମୋତେ ହୋଇଅଛି ଅପବାଦ ।
ଦୁଃସନ୍ଧ ଜନଙ୍କ ମିଥ୍ୟା ବଚନରେ ପାଉଛି ମୁଁ ମନଖେଦ ।।
ଶ୍ରୀକୃଷ୍ଣ ବଚନେ ଜାମ୍ବବନ୍ତ ବୀର ମନେ କରଇ ବିଚାର ।
ଅନାଦି ପୁରୁଷ ପୁରେ ବିଜେ କଲେ କିବା ଦେବା ଉପହାର ।
ଏମନ୍ତେ ବିଚାରି କନ୍ୟାକୁ ସୁବେଶ କରି ତାର କଣ୍ଠେ ମଣି ।
ଦେଇଣ ଆନନ୍ଦେ କୃଷ୍ଣ ପାଦପଦ୍ମେ କନ୍ୟା ସମର୍ପିଲା ଆଣି ।।
ବୋଲଇ ଗୋବିନ୍ଦ ତ୍ରାହି ମୋତେ କର ନ ଘେନିବ ମୋର ଦୋଷ ।
ନ ଚହ୍ନିଣ ତୋତେ ଅପରାଧ କଲି କ୍ଷମ ପରମ ପୁରୁଷ ।।
ଏଣେ ସର୍ବଜନ ବିଳଦ୍ୱାରେ ଥାଇ କୃଷ୍ଣଙ୍କ ବିଳମ୍ବ ଦେଖି ।
ନିରାଶ ହୋଇଣ ଗୃହକୁ ଗମନ କଲେ ହୋଇ ମନେ ଦୁଃଖୀ ।।
କାନ୍ଦିଣ ଦେବକୀ ବସୁଦେବ ଆଗେ କହି ସର୍ବ ସମାଚାର ।
ରୁକ୍ମିଣୀ ସହିତେ ଯେତେକ ଯାଦବ ଶୁଣି ହୋଇଲେ କାତର ।।
ଦ୍ୱାରକାପୁରର ସର୍ବଜନେ ଯାଇ ସତ୍ରାଜିତକୁ କହନ୍ତି ।
ତୋହର ଯୋଗରୁ ଶ୍ରୀକୃଷ୍ଣ ବନ୍ଧୁନେ ଆମ୍ଭେ ହୋଇଲୁ ବଦତି ।।
ନ ଦେଖି ଗୋବିନ୍ଦେ ସର୍ବେ ନିରାନନ୍ଦେ ଶ୍ରୀକୃଷ୍ଣ ଲଭିବା ଆଶେ ।
ନାନା ଉପହାର ପଦାର୍ଥ ଘେନିଣ ପ୍ରବେଶି ଦୁର୍ଗାଙ୍କ ପାଶେ ।।
ନମୋ ଆଦ୍ୟମାତ ଯାଦବେ ଅନାଥ କୃଷ୍ଣଙ୍କ ଯୋଗୁଁ ହୋଇଲୁଁ ।
ଆମ୍ଭ ଦୁଃଖ ନାଶ ହୋଇବା କାରଣ ତୋ ପାଦେ ଶରଣ ଗଲୁଁ ।।

ଯଦୁମାନଙ୍କର ଦୁଃଖ କଣ୍ଠେ ଶୁଣି କହନ୍ତି ଶମ୍ଭୁବନିତା ।
ଏକ୍ଷଣି ଦେଖିବ ଶ୍ରୀକୃଷ୍ଣଙ୍କ ମୁଖ ନ କର ମନରେ ଚିନ୍ତା ॥
ଏମନ୍ତ ସମୟେ ଜାମ୍ବବତୀ ଘେନି ମିଳିଲେ ଆସି ଗୋବିନ୍ଦ ।
ସର୍ବଜନେ ମିଳି ଦରଶନ କଲେ ମନେ ହୋଇଣ ଆନନ୍ଦ ॥
ଉଗ୍ରସେନ ରାଜା ସଭା ମଧ୍ୟେ ଆସି ବିଜୟ କଲେ ଶ୍ରୀହରି ।
ଯେଉଁ ପରକାରେ ମଣି ଲାଭ ହେଲା ସବୁ କହିଲେ ବିସ୍ତାରି ॥
ପୁଣି ଦାମୋଦର ମଣି ଘେନି କରେ ସତ୍ରାଜିତକୁ ଡକାଇ ।
ତାର ହସ୍ତେ ମଣି ସମର୍ପଣ କରି ପୁରେ ପ୍ରବେଶିଲେ ଯାଇଁ ॥
ସତ୍ରାଜିତ ମଣିରତ୍ନ କରେ ଘେନି ମନେ ପାଇ ଅନୁତାପ ।
ଶ୍ରୀକୃଷ୍ଣ ଚରଣେ ଅପରାଧ କରି ଅରଜିଲି ବହୁପାପ ॥
ବିଷାଦିତ ଚିତ୍ତେ ଭାଳଇ ନରତେ କେମନ୍ତେ ଏ ଦୋଷ ଯିବ ।
କି ଉପାୟ କଲେ ମୋହଠାରେ ଭଲେ ଗୋବିନ୍ଦ ପ୍ରସନ୍ନ ହେବ ॥
ପୁଣି ବିଚାରଇ ମୋହର ଦୁହିତା ଅଛି ସ୍ତ୍ରୀରତ୍ନ ସାର ।
ମଣି ସହିତେ ତାହାକୁ ସମର୍ପିବି ଶ୍ରୀକୃଷ୍ଣ ପାଦପଦ୍ମର ॥
ସେ କମଳାପତି ଅନ୍ୟେ ତାର ଶାନ୍ତି ନୋହିବ ମୁଁ ଜାଣେ ଭଲ ।
ଏ ଯେ ମଣିରତ୍ନ ମୋର କନ୍ୟାରତ୍ନ ସଙ୍ଗେ ଅଛେ ସମତୁଲ ॥
ଏମନ୍ତ ବିଚାରି ସତ୍ରାଜିତ ବୀର ମନରୁ ଭ୍ରାନ୍ତି ଛାଡ଼ିଲା ।
ଭଣ୍ଡାରରୁ ନାନା ଅଳଙ୍କାର ଆଣି ଦୁହିତାକୁ ସଜ କଲା ॥
ଆବର କନ୍ୟାର କଣ୍ଠେ ମଣି ଭିଡ଼ି ମିଳିଲା ଶ୍ରୀକୃଷ୍ଣ ପାଶ ।
ବେନି କର ଯୋଡ଼ି ପାଦେ ପଡ଼ି ଉଠି କହଇ ମଧୁର ଭାଷ ॥
ତୁ ନାଥ ଜଗତଜନଙ୍କ ଠାକୁର ମୁଁ ଅଟେ ତୋର କିଙ୍କର ।
ସତ୍ୟଭାମାକୁ ମୁ ତୋତେ ସମର୍ପିଲି ହୁଅ ତୁ ଏହାର ବର ॥
ତାର ବାକ୍ୟ ଶୁଣି ଦେବ ଚକ୍ରପାଣି ହେଲେ ଆନନ୍ଦିତ ଚିତ୍ତ ।
କମଳାର ଅଂଶେ ଅବତାର ଜାଣି ବିବାହ କଲେ ତ୍ୱରିତ ॥

ଏଥି ଅନନ୍ତରେ ଅକ୍ରୂର ସଙ୍ଗରେ କୃତବ୍ରହ୍ମା ଶତଧନୁ ।
ତିନିଜଣ ମିଳି ବିଚାର କରନ୍ତେ ଅସ୍ତାଚଳେ ଗଲେ ଭାନୁ ॥
ଶତଧନୁ ବୋଲେ ପାପ ସତ୍ରାଜିତ କେମନ୍ତ ଅନ୍ୟାୟ କଲା ।
ତାହାର କନ୍ୟାକୁ ବିବାହ ଦେବାକୁ ଦତ୍ତବାକ୍ୟ ଦେଇଥିଲା ॥
ଏବେ ମୋତେ ସତ୍ୟଭାମାକୁ ନ ଦେଇ ଦେଲା ନେଇ ଗୋବିନ୍ଦକୁ ।
କି ଉପାୟ କରି ମଣି ନେଇ ତାର ଆବର ନାଶିବି ତାକୁ ॥
ଅକ୍ରୂର ବୋଲଇ ଶୁଣ ଶତଧନୁ ଜୀବନ୍ତେ ସେ ମଣିବର ।
କେବେହେଁ ପ୍ରାପତ ନ ହୋଇବ ତୋତେ ଉପାୟ ଥିଲେ ତୁ କର
ଏମନ୍ତ ବିଚାର କରି ତିନିଜଣ ଗଲେ ଯେ ଯାହା ଭୁବନ ।
ରାତ୍ରେ ଶତଧନୁ ଅସ୍ଥିର ହୋଇଣ କୋପେ କମ୍ପେ ଘନ ଘନ ॥
ବସ୍ତ୍ର ପିନ୍ଧି ବେଗେ ବାହାର ହୋଇଲା ହସ୍ତରେ ଧରିଣ ଖଣ୍ଡା ।
ରାତ୍ରେ ସତ୍ରାଜିତ ଗୃହରେ ମିଳିଲା କୋପେ ହୋଇ ପରଚଣ୍ଡା ॥
ନିକଟରେ ଥିଲା ତାହାର ବନିତା ଭୟେ ଗୋଳଧ୍ୱନି କଲା ।
ନିଦ୍ରାରେ ଅଚେତ ଥିଲା ସତ୍ରାଜିତ ଛେଦିଲା ତାହାର ଗଳା ॥
ପଶୁ ପ୍ରାୟେ ବଧ କରିଣ ତାହାକୁ ହରିଲା ଅମୂଲ୍ୟ ମଣି ।
ନିଜ ଭୁବନକୁ ଗମନ କରନ୍ତେ ବେଗେ ପାହିଲା ରଜନୀ ॥
ପିତାର ମରଣ ସତ୍ୟଭାମା ଶୁଣି ବିଳାପେ ଭୂମିରେ ପଡ଼ି ।
ଶୋକରେ ଅସ୍ଥିର ହୋଇ ରାମାବର କରଯୁଗ ଶିରେ ତାଡ଼ି ॥
ପିଅର ବୋଲିଣ କାନ୍ଦଇ ବିକଳେ ପୁଣି ହୁଏ ଅଚେତନ ।
ପଡ଼ନ୍ତି ଗଡ଼ଇ ବାତୁଳଙ୍କ ପ୍ରାୟେ ମୁଖୁଁ ନ ଫୁଟେ ବଚନ ॥
ପିତାର ମରଣେ କୋପେ ସତ୍ୟଭାମା ମିଳି ହସ୍ତିନା ନଗର ।
କୃଷ୍ଣ ମୁଖ ଚାହିଁ ଶିରେ କରଦେଇ କହେ ପିତା ସମାଚାର ॥
ହେ ନାଥ ତୁମ୍ଭର ଶତଧନୁ ମୋର ପିଅରକୁ ନାଶ କରି ।
ମଣି ନେଇ ପୁଣି ପଳାଇ ଲୁଚିଛି ଆପଣାର ନିଜପୁରୀ ॥

ସତ୍ୟଭାମା ମୁଖୁଁ ଏମନ୍ତ ଶୁଣିଣ ଚକିତରେ ଦାମୋଦର ।
ହରି ହଳଧର କପଟେ କାନ୍ଦନ୍ତି ନୟନୁ ବୁହାଇ ନୀର ॥
କୋପଭର ହୋଇ ସତ୍ୟଭାମା ଘେନ ରଥେ ବଜେ ସ୍ୱମନ୍ଦର ।
ବୋଇଲେ ଦାରୁକ ଦ୍ୱାରକାକୁ ରଥ ବାହ ତୁମ୍ଭେ ବେଗକର ॥
ସ୍ୱମ ଗୋବନ୍ଦଙ୍କ ଆଗମନ ବାର୍ତ୍ତା ଭୟେ ଶୁଣି ଶତଧନୁ ।
କମ୍ପର ମଣି ଘେନ ପୁରୁଁ ବାହାରନ୍ତେ ଥିକୁଳେ କମ୍ପାଇ ତନୁ ॥
ସଭୟେ କୃତବ୍ରହ୍ମାର ପୁରେ ମିଳ ବଚନ କହେ ଆଶ୍ୱାସୀ ।
ସତ୍ରାଜିତ ମୁଣ୍ଡ ହାଣି ମଣିରତ୍ନ ଆଣିଲି ତା ପୁରେ ପଶି ॥
ତୋର ବଚନେ ମୋ ମତି ଭ୍ରମ ହୋଇ କରି ଏଡ଼େବଡ଼ କର୍ମ ।
ଆଗ ପଛକୁ ମୁଁ ବଗ୍ଭର ନ କଲି ଛାଡ଼ିଲାକ ମୋତେ ଧର୍ମ ॥
ଏବେ କେଉଁପରି ରକ୍ଷା ହେବ ପ୍ରାଣ ଉପାୟ ତାହାର କହ ।
ମଣି ଦେଇ ଏବେ ଶରଣ ପଶୁଛି ତୁ ମୋହର ପକ୍ଷ ହୁଅ ॥
ଶତଧନୁ ଠାରୁ ଏମନ୍ତ ବଚନ କୃତବ୍ରହ୍ମାବୀର ଶୁଣି ।
ସ୍ୱମକୃଷ୍ଣଙ୍କର ଦ୍ରୋହ କାର୍ଯ୍ୟ କଲୁ କେ ହୋଇବ ପକ୍ଷ ଜାଣି ॥
ଯାର କୋପେ କଂସ ସବଂଶରେ ନାଶ ହାରିଗଲା ଜରାସନ୍ଧ ।
ଭବତଳେ ତାର ବଇରୀ ହୋଇଣ କେ ଅବା କରିବ ଦ୍ୱନ୍ଦ ॥
ଏମନ୍ତ ନିରାଶ ବଚନ ତାଠାରୁ ଶୁଣି ବେଗେ ଚଳିଗଲା ।
ଜୀବନ ବିକଳେ ଅକ୍ରୂର ଗୃହରେ ଗୁପ୍ତେ ପ୍ରବେଶ ହୋଇଲା ॥
ତୋଳ ବୋଲେ ମୁଁ ସତ୍ରାଜିତେ ମାରିଲି କୋପିଛନ୍ତି ଚକ୍ରଧର ।
ପାଦଧରି ତାର ବୋଲଇ ମୁଁ ଏବେ ଶରଣ ଗଲି ତୋହର ॥
ଅକ୍ରୂର ବୋଲଇ ଗୋବିନ୍ଦର ଗତି ନାହିଁ କି ତୁହି ଶୁଣିଣ ।
ଏବେ ମଣି ନେଇ ସ୍ୱମକୃଷ୍ଣ ପାଶେ ତୁହି ପଶ ଯା ଶରଣ ॥
ବାଳୁତ ବୟସେ କି କି ନ କଲା ସେ ଇନ୍ଦ୍ର ତୁଲେ ବାଦ କରି ।
ଅଙ୍ଗୁଳି ଅଗ୍ରରେ ଛଅ ଦିନକାରେ ଧରି ଗୋବର୍ଦ୍ଧନ ଗିରି ॥

❋ ହରଅର୍ଜୁନ କଳି । ❋

ସୃଜଇ ପାଳଇ ପୁଣି ସଂହାରଇ ସଂସାର ଯା ଖେଳାଘର ।
ଅନନ୍ତ ମହିମା ଅଟଇ ଯାହାର ତାକୁ ମୋର ନମସ୍କାର ॥
କାର ବଳେ ତୋତେ କେ ରଖି ପାରିବ କୋପିଛନ୍ତି ନାରାୟଣ ।
ପଳାଇ ହସ୍ତିନା ପୁରେ ଯୁଧିଷ୍ଠିର ପାଦେ ତୁ ପଶ ଶରଣ ॥
ଅକ୍ରୂର ନିଷ୍ଠୁର ବାକ୍ୟେ ଶତଧନୁ ବେଗେ ତହୁଁ ପଳାଇଲା ।
ହସ୍ତିନାକୁ ଯାଇ ଯୁଧିଷ୍ଠିଙ୍କ ପାଶେ ସବୁ ବୃତ୍ତାନ୍ତ କହିଲା ॥
ଶତଧନୁ ବାକ୍ୟ ଶ୍ରବଣେ ଯୁଧିଷ୍ଠି ଦେବ ବୋଲନ୍ତି ତକ୍ଷଣ ।
ତୁ ଯେବେ ଜଗନ୍ନାଥଙ୍କ ଶତ୍ରୁ ଅଟୁ କେହ୍ନେ ରଖିବ ଶରଣ ॥
ତାହାର ବିକଳ ଦେଖି ସହଦେବ କରେ ତାହାକୁ ସାନ୍ତ୍ୱନା ।
ପ୍ରାଣ ରକ୍ଷା ପାଇଁ ଉପାୟେକ ଅଛି ଅର୍ଜୁନେ କର ପ୍ରାର୍ଥନା ॥
ଶ୍ରୀକୃଷ୍ଣଙ୍କ ଶତ୍ରୁ ଅଟୁ ତୁ ଯଥାର୍ଥ ସେ ଯେ ହର ପଞ୍ଚଭୂତ ।
ତାଙ୍କ ଚରଣେ ତୁ ଶରଣ ପଶିବୁ ରକ୍ଷା କରିବେ ଯେ ପାର୍ଥ ।
ସହଦେବ ବାଣୀ ଶତଧନୁ ଶୁଣି ବୋଲେ ଯେବେ କଲ ଦୟା ।
ବାସବ ନନ୍ଦନ କେଉଁଠାରେ ଛନ୍ତି କହିବାକ ଛାଡ଼ ମାୟା ॥
ଶତଧନୁ ବାଣୀ ଶୁଣି ମନ୍ତ୍ରୀମଣି ବୋଲେ ଶୁଣ ବୀରବର ।
ବୀର ଫାଲଗୁନୀ ବିଜେ କରିଛନ୍ତି ମଣିଭଦ୍ରା ପର୍ବତର ॥
ସହଦେବଠାରୁ ସମାଚାର ପାଇ ଜୀବନବଦକଲେ ଚଳି ।
କେତେଦିନେଁକ ଦୂରେ ଗମନ କରନ୍ତେ କିରାତ ନୃପେ ଭେଟିଲା ॥
କରଯୋଡ଼ି ତାର ଅଗ୍ରତେ କହଇ ସାହା କର ବାରେ ମୋତେ ।
ଗୋବିନ୍ଦଙ୍କ ଭୟେ ତୋଠାକୁ ଆଇଲି ଶରଣ ରଖ ତୁ ମୋତେ ॥
ତାହାର ବଚନେ କିରାତ ରାଜନ ବୋଲେ କୃଷ୍ଣ ଶତ୍ରୁ ତୁହି ।
ତିନିପୁର ଲୋକେ ଏକଜ ହୋଇଲେ ରଖି ନ ପାରିବେ କେହି ॥
ବ୍ରହ୍ମାଣ୍ଡକର୍ତ୍ତା ଗତି ମୁକ୍ତିଦାତା ତାଙ୍କ ସଙ୍ଗେ ବାଦୀ ହେଲୁ ।
ଜାଣୁ ଜାଣୁ ଅଗ୍ନିଶିଖାରେ ପତଙ୍ଗ ପରି ତୁହି ନାଶ ଗଲୁ ॥

କ୍ରୀତ ରାଜନ ଠାରୁ ଏ ବଚନ ଶୁଣି ବେଗେ ଶତଧନୁ ।
ଗହନ ବନକୁ ପଳାଇଣ ଗଲା ଭୟେ କମ୍ପେ ତାର ତନୁ ॥
ପୁଣି କେତେଦୂର ଯାଆନ୍ତେ ଦେଖିଲା ଏକ ରାକ୍ଷସ ନୃପତି ।
ତା ପାଶେ ପ୍ରବେଶି ଝଁଠତ ବୋଲଇ ଶୁଣିମା ମୋର ବିନତି ॥
ସଂସାର ମଧ୍ୟରେ ବୀରଙ୍କ ଉପରେ ଅଛୁ ତୁହି ବଳୀୟାର ।
ତୋହର ଚରଣେ ଶରଣ ପଶୁଛି ଭୟୁଁ ମୋତେ ସାହା କର ॥
ବୋଲେ କୃତକେଶୀ ମନ୍ଦେ ମନ୍ଦେ ହସି ତୋର ନାମ ଅଟେ କିସ !
କାହାର ଭୟରେ କାତର ହୋଇଣ ଅଇଲୁ ତୁ ମୋର ପାଶ ॥
ଅସୁର ବଚନେ ଆଶ୍ୱାସ ପାଇଣ ବୋଲେ ଶୁଣ ଶତଧନୁ ।
ଦ୍ୱାରକାରେ ଘର ବଇରୀ ମୋହର ଅଟେ ବସୁଦେବ ସୁନୁ ॥
ଶୁଣି ରକ୍ଷସାଇଁ ବୋଲେ ମୋ ପାଶରେ ରହ ତୁ ଦେଲି ଅଭୟ ।
ସଂଗ୍ରାମେ ଅଦ୍ଭୁତ ବ୍ୟୂହ ରଚି ତୋର ଶତ୍ରୁକୁ କରିବି କ୍ଷୟ ॥
ଏମନ୍ତ ବୋଲିଣ ଶକଟ ନାମେଣ ବ୍ୟୂହ ଏକ ନିର୍ମାଣିଲା ।
ଦ୍ୱାର ଦ୍ୱାର ଷୋଳ କନ୍ଧ ଷୋଳ କଣା ତହିଁ ପାଶରେ ରଖିଲା ॥
ତାର ଦେହେଁ ପଦ୍ମ ବ୍ୟୂହ ପାତି ପୁଣି ପଦ୍ମେକ ସେନା ବଢ଼ାଇ
ପୁଣି ତା ମଧ୍ୟରେ ସୂଚି ବ୍ୟୂହ କଲା ଭେଦି ନ ପାରିବେ କେହି ॥
ତାର ଚତୁର୍ଦ୍ଦିଗେ ଅସ୍ତ୍ର ଶସ୍ତ୍ରମାନ ବେଗେ କଲା ସଂସ୍ଥାପନ ।
ତାର ମଧ୍ୟଦେଶେ ଶତଧନୁ ନେଇ ରଖିଲାକ ନୃପରାଣ ॥
ପବନ ତପନ ଯମ ବୈଶ୍ୱାନର ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ତେତିଶକୋଟି ଦେବ ଆଦି ମିଳିଣ ଆସିଲେ ହେବେ ସଂହାର ॥
ଏମନ୍ତ ପ୍ରକାରେ ସୂଚିବ୍ୟୂହ ମଧ୍ୟେ ରହି ଶତଧନୁ ତୋଷ ।
ମନରେ ତାହାର ଭୟକୁ ଉପେକ୍ଷି କରେ ବହୁ ପରିତୋଷ ॥
ଏଥୁ ଅନନ୍ତରେ ଶୁଣ ସମାଚାର ରାମକୃଷ୍ଣ ବେନିଭାଇ ।
ନନ୍ଦିଘୋଷ ରଥେ ଚଢ଼ିଣ ଦ୍ୱାରକାପୁରେ ପ୍ରବେଶିଲେ ଯାଇଁ ।

ଏମନ୍ତ ସମୟେ ଦ୍ୱାରକାବାସୀଏ ବୋଲନ୍ତି ହେ ଯଦୁବୀର ।
ତୁମ୍ଭର ଭୟରେ ଅଶ୍ୱପୃଷ୍ଠେ ଚଢ଼ି ପଳାଇଲା ଛାଡ଼ି ପୁର ॥
ଏ କଥା ଶ୍ରବଣେ ଶ୍ରୀକୃଷ୍ଣଙ୍କ ମନେ ଉପୁଜିଲା ବଡ଼ କ୍ରୋଧ ।
ଯହିଁ ତହିଁ ଲୁଚିଥିଲେ ଶତଧନୁ ନିଶ୍ଚୟ କରିବି ବଧ ॥
ଏମନ୍ତ ସମୟେ ଏକ ଦୂତ ଆସି ଜଣାଏ ଗୋବିନ୍ଦ ପାଶ ।
ତୁମ୍ଭର ଭୟରେ ଶତଧନୁ ଯାଇ ରହିଛି ହସ୍ତିନା ଦେଶ ॥
ଏସନକ ବାଣୀ ଦୂତମୁଖୁଁ ଶୁଣି ବୀରବେଶେ ଚକ୍ରଧର ।
ବାରୁଣା ଭୁବନେ ମିଳିଲେକ ଯାଇଁ ଯୁଧିଷ୍ଠି ରାଜା ପାଶର ॥
ଶ୍ରୀକୃଷ୍ଣଙ୍କୁ ଦେଖି ଯୁଧିଷ୍ଠି ଆନନ୍ଦେ ବୋଲନ୍ତି ଆହେ ଗୋବିନ୍ଦ ।
କେଉଁ କାର୍ଯ୍ୟ ପାଇଁ କ୍ରୋଧେ ଆସିଅଛ କହ ପ୍ରଭୁ ଆନନ୍ଦକନ୍ଦ ॥
ବୋଲନ୍ତି ଶ୍ରୀହରି ସତ୍ରାଜିତେ ମାରି ଶତଧନୁ ତୁମ୍ଭ ପୁର ।
ଆସି ଲୁଚିଥିବା ଦୂତଙ୍କ ମୁଖରୁ ଶୁଣିଲୁଁ ଏ ସମାଚାର ॥
ତେଣୁ ମୁହିଁ ତୁମ୍ଭ ପୁରକୁ ଆଇଲି ତାକୁ ଖୋଜିବାର ପାଇଁ ।
କେଉଁଠାରେ ତାକୁ ଲୁଚାଇ ରଖିଛ ସତ୍ୱର ଦିଅ ଦେଖାଇ ॥
ଗୋବିନ୍ଦ ବଚନ ଶୁଣି ଧର୍ମପୁତ୍ର ବୋଲନ୍ତି ଏଠାରେ ନାହିଁ
ତହୁଁ ନାରାୟଣ ହୋଇ କୋପମନ କାନନକୁ ଚଲେ ଧାଇଁ ॥
ଗହନ ବନରେ ବୁଲିଣ ଶ୍ରୀହରି ଶତଧନୁକୁ ଖୋଜନ୍ତି ।
ଏମନ୍ତ ସମୟେ ପଥର ମଧ୍ୟରେ ଭେଟ ଶବର ନୃପତି ॥
ଦେଖିଣ ଶ୍ରୀହରି ପୁଚ୍ଛନ୍ତି ତାହାକୁ ଦେଖିଛ କି ଶତଧନୁ ।
ସେ ବୋଇଲା ପୂର୍ବଦିଗେ ପଳାଇଛି ଭୟେ କମ୍ପେ ତାର ତନୁ ॥
ସେଠାରୁ ବାହନ ଚଳିଲେ ମୋହନ ହୃଦରେ ପୂରିଛି ରାଗ ।
ଗହନ ବନରେ କେଶରୀ ସମାନେ ଧାମନ୍ତି ହୋଇ ଉଦ୍‌ବେଗ ॥
କିଛି ଦୂର ଯାନ୍ତେ ଦେଖିଲେ ବହୁତ ପୂର୍ବ ଅଛନ୍ତି ଦନୁଜ ।
ମୋର ଶତ୍ରୁ ଶତଧନୁ ଦେଖିଛ କି ପୁଚ୍ଛାକଲେ ଦେବରାଜ ॥

ଶ୍ରୀହରି ବଚନ ଶୁଣିବା ମାତ୍ରକେ କୋପେ ଅସୁର ରାଜନ ।
ବୋଲେ ଶତ୍ରୁକୁ ତୁ ଖୋଜି ଆସିଅଛୁ ନାଶିବି ତୋର ଜୀବନ ॥
ଏମନ୍ତ ବୋଲନ୍ତେ ଦୈତ୍ୟଗଣେ ମିଳି କୃଷ୍ଣଙ୍କୁ ଯହୁଁ ବେଢ଼ିଲେ ।
ଶାର୍ଦ୍ଦୂଳ ସମ୍ମୁଖେ ଛେଳି ପଲ ପ୍ରାୟେ ଦନୁଜ ଦଳ ଧଶିଲେ ॥
କୋପେ ବ୍ରହ୍ମବାଣି ସୁଦର୍ଶନଚକ୍ର ପେଶି ନାଶନ୍ତି ଅସୁର ।
ସର୍ବ ବ୍ୟୂହ ଭେଦ ସୈନ୍ୟ ଶିର ଛେଦ କରୁଛନ୍ତି ରଣଗୋଳ ॥
ସେନାଗଣ ନାଶ ହେବାର ଦେଖିଣ କ୍ରୋଧେ ଦନୁଜ ଭୂପାଳ ।
କ୍ରୋଧେ ଅନ୍ଧ ହୋଇ ଶ୍ରୀକୃଷ୍ଣ ଅଙ୍ଗକୁ ପିଙ୍ଗି ଦେଲାକ କୋଦାଳ ॥
ତାହା ଦେଖି ହରି ବୈଷ୍ଣବ ଧନୁକୁ ଶୀଘ୍ର କଲେ ସୁମରଣ ।
ସୁରିବା ମାତ୍ରକ ଧନୁର୍ବର ଆସି ମିଳିଲା ତାଙ୍କ ଚରଣ ॥
କରେ ଧନୁ ଧରି ଅର୍ଦ୍ଧଚନ୍ଦ୍ର ବାଣ ନେଇ ଗୁଣେ ବସାଇଲେ ।
କୋଦାଳ ସହିତେ ଅନେକ ଅସୁର ସେ ଶରେ ପ୍ରାଣ ହାରିଲେ ॥
ପୁଣି ଦଇତ୍ୟାରି ନୀଳଚକ୍ର ସୁରି ତଆରି ବୋଲନ୍ତି ତାକୁ ।
ଶୀଘ୍ରେ ଗତି କରି ଯାଇ ବଧ କର କୁଟକେଶୀ ଦଇତକୁ ॥
ଶ୍ରୀହରି ଆଜ୍ଞାରେ ନୀଳଚକ୍ର ଯାଇଁ ଅସୁର କଣ୍ଠେ ପଡ଼ିଲା ।
ତୁରିତେ ତା ଶିର ବେନିଖଣ୍ଡ କରି ଚକ୍ରବର ଫେରିଗଲା ॥
ଅସୁରର ପ୍ରାଣ ଛାଡ଼ି ଗଲାବେଳେ ରଡିଏ ଦେଲା ବିକଳେ ।
ଜୀବନ ସଂଶୟ ହୋଇଲା ମୋହର ଶତଧନୁ ମନେ ଭାବିଲେ ॥
ନିଶ୍ଚୟ ମୋ ପ୍ରାଣ ନେବେ ନାରାୟଣ ଏମନ୍ତ ପାଞ୍ଚି ତା ମନ ।
ବିକଳେ ଧାମଇଁ ଜୀବନର ଆଶେ ବ୍ୟୂହରୁ ଖସି ବହନ ॥
ନିରାଶ୍ରୟ ହୋଇ ଗହନ ବନରେ ଯାଉଁ ସହଜରେ ବାଣୀ ।
ସ୍ମରଣ କରି ମଣିଭଦ୍ର ପର୍ବତେ ଯାଇଁ ଲେଉଟେ ଫାଲ୍‌ଗୁନି ॥
ଦେଖିଲା ଗିରିର ଶୋଭା ମନୋହର ଗଲା ଶିଖରକୁ ଉଠି ।
ଯାଆନ୍ତେ ବାସବନନ୍ଦନକୁ ଦେଖି ସାଷ୍ଟାଙ୍ଗେ ପାଦରେ ଲୋଟି ॥

ଉଭା ହୋଇ ପୁଣି କରଯୋଡ଼ି ସ୍ତୁତି କରଣ ବୋଲଇ ବାଣୀ ।
ଶରଣ ଗଲି ତୁମ୍ଭ ପାଦେ ଜୀବନ ରଖ ଯଦି ଚୂଡ଼ାମଣି ॥
ଆହେ ଧନଞ୍ଜୟ ମୋର ପ୍ରାଣ ରଖ ମୋଠାରୁ ନାହିଁ କରଷ ।
ତୁମ୍ଭ ପଦ୍ମପାଦେ ଶରଣ ପଶିଲି ହୁଅ ମୋରେ ସାହାପକ୍ଷ ॥
ତାଠାରୁ ଏମନ୍ତ ଶୁଣି ଧନଞ୍ଜୟ କହନ୍ତି ତୁହି ନିର୍ଭୟ ।
ହୋଇ ଏଠେଁ ଥାଅ ଆଜହୁଁ ମୋଠାରେ ମନରୁ ଛାଡ଼ଣ ଭୟ ॥
ନ ଜାଣୁ କି ମୋର ବଳବୀର୍ଯ୍ୟ ତୁହି ସ୍ୱର୍ଗରେ ମୁଁ ଆଖଣ୍ଡଳେ ।
ଜିଣିଲି କଇତ ରୂପେ ପଞ୍ଚମାଥ ପଶୁପତ ଦେଲେ ହେଳେ ॥
ବ୍ରହ୍ମଶକତ ବଜ୍ରଶର ପରଶୁ ମୁଦ୍ଗର ଯେ ଦେବଶର ।
ଖାଣ୍ଡବ ଦହି ଆରୋଗ୍ୟ କରିବାରୁ ଦେଇଛନ୍ତି ବୈଶ୍ୱାନର ॥
ଶରଣପଞ୍ଜର ବାନା ଅଛି ମୋର ଡରୁ କିମ୍ପା ତୁହି ଚଉ୍ଗେ ।
ତୋର ଶତ୍ରୁକୁ ଅବଶ୍ୟ ସଂହାରିବି ନିଶ୍ଚୟ ରଖିବି ତୋତେ ॥
ଅର୍ଜୁନ ଆଶ୍ୱାସେ ଶତଧନୁ ତୋଷେ ରହିଲା ନିଶ୍ଚିନ୍ତ ହୋଇ ।
ଏଣେ କୃଷ୍ଣଚନ୍ଦ୍ର ଅସ୍ତୁରକୁ ନାଶି ଧାମନ୍ତି ଅଧିର ହୋଇ ॥
ମଣିଭଦ୍ରା ଗିରି ନିକଟେ ପ୍ରବେଶ ହୋନ୍ତେ ଅସ୍ତଗଲେ ଭାନୁ ।
ଦେଖିଲେ ଶବର ପାଶୁଶେ ବସିଛି ନିର୍ଭୟରେ ଶତଧନୁ ॥
ଅନ୍ଧାରେ ପାର୍ଥଙ୍କୁ ଚିହ୍ନି ନ ପାରଣ ବୋଲନ୍ତି ଆରେ ଶବର ।
କେଉଁ ସାହସରେ ନିର୍ଭୟ ମନରେ ରଖିଛୁ ଶତ୍ରୁକୁ ମୋର ॥
ହିତକଥା ଶୁଣ ଶତ୍ରୁକୁ ମୋହର ଛାଡ଼ ମୁଁ ତାହାର ପ୍ରାଣ ।
ଯେବେ ନିଶ୍ଚୟ ତୁ କଲେ ସାହାଯ୍ୟ ଅନିଷ୍ଟ ହୋଇବ ଜାଣ ॥
ଅନେକ ପ୍ରତିଜ୍ଞା କରଣ ଶ୍ରୀହରି ଡାକନ୍ତି ଆରେ ଶବର ।
ଜୀବନର ଆଶ ଥିଲେ ବେଗ ହୋଇ ପଳାଇ ଯା ନିଜପୁର ॥
ଶ୍ରୀହରିଙ୍କ ଡାକ ନ ଶୁଣି ଅର୍ଜୁନ ବଧିର ପ୍ରାୟେ ହୋଇଲେ ।
ତା ଦେଖି ଗୋବିନ୍ଦ ଆକର୍ଷିଣ ଧନୁ ତୀକ୍ଷ୍ଣ ବାଣେକ ବିନ୍ଧିଲେ ॥

କଣ୍ଟିତ ନାରାଚ ଦେଖି ପାର୍ଥବୀର ତାହା କାଟିଲେ ବନ୍ଧନ ।
ଶ୍ରୀକୃଷ୍ଣ ହୃଦକୁ ଲକ୍ଷ୍ୟ କରି ଶର ବନ୍ଧୁଛନ୍ତି ଘନ ଘନ ॥
ପୁଣି ପାର୍ଥ ବୀର ଚିତ୍ତରେ ସୁମରି ବିନ୍ଧିଲେ ପର୍ବତାଶର ।
ବଜ୍ରବାଣ ଘେନି ତାହା ନିବାରିଲେ କୋପେ ପ୍ରଭୁ ଚକ୍ରଧର ॥
ବାବଲଶରକୁ ଘେନିଣ ଗୋବିନ୍ଦ ମନ୍ତ୍ରିଣ ଗୁଣେ ବସାଇ ।
ଧନୁ ଓଟାରିଣ ଡଆର ପେଷିଲେ ଶବରକୁ ନାଶ ତୁହି ॥
ବ୍ରହ୍ମ ଶକତରେ ବାବଲ ଶରକୁ ଯନ୍ତୁଁ କାଟିଲେ ଅର୍ଜୁନ ।
ତାହା ଦେଖି କ୍ରୋଧେ ବାଛି ବାଛି ଶର ବିନ୍ଧନ୍ତି ନନ୍ଦନନ୍ଦନ ॥
ପୁଣିହିଁ ଶ୍ରୀକୃଷ୍ଣ ବେଗେ ବ୍ରହ୍ମାନଳ ଶରକୁ ଧନୁରେ ଭରି ।
ମନ୍ତ୍ରିଣ ପେଶନ୍ତି ଶବରକୁ ଯାଇ ମାରି ଆସ ବେଗ କରି ॥
ଶୁଣି ମହାଶର ହୋଇ ଭୟଙ୍କର ଧରି ପ୍ରଳୟ ମୂରତି ।
କ୍ରମେ କ୍ରମେ ଆସି ପ୍ରବେଶ ହୋଇଲା ବାସବନନ୍ଦନ କତି ॥
ଦେଖିଣ କୀରଟୀ ମନ୍ଦେ ଅଳ୍ପ ହସି ଶକ୍ତି ଘେନି ନିବାରିଲେ ।
ଧନ୍ୟରେ ଶବର ତୋର ଷଦିପଣ ବୋଲି ମନେ ପ୍ରଶଂସିଲେ ॥
ଧନ୍ୟ ତୋ ଜନନୀ ଧନ୍ୟ ତୋ ପିଅର ଧନ୍ୟ ତୋର ଅସ୍ତ୍ରଶିକ୍ଷା ।
ବୀରଙ୍କ ମଧ୍ୟରେ ଅଗ୍ରଗଣ୍ୟ ତୁହି ଧନ୍ୟ ତୋର ଗୁରୁ ଦୀକ୍ଷା ॥
ମନରେ ଏମନ୍ତ ପ୍ରଶଂସି ଗୋବିନ୍ଦ ବୈଷ୍ଣବ ଶରକୁ ଧରି ।
ମନ୍ତ୍ରେ ଅଭିଷେକ ଗୁଣରେ ବସାଇ ଛାଡି ଦେଲେ ବେଗକରି ॥
ଆକାଶମାର୍ଗରେ ଉଡି ଆସେ ଶର ଦେଖିଣ ତାହା କିରୀଟୀ ।
ଅଗ୍ନି ସୁମରିଣ ବୈଷ୍ଣବ ଚକ୍ରରେ ବେଗେ ଦେଲେ ତାହା କାଟି ॥
କୋପରେ ଅର୍ଜୁନ ଅର୍ଦ୍ଧଚନ୍ଦ୍ର ବାଣ ଗୁଣେ ନେଇ ବସାଇଲେ ।
ମୋହର ଶତ୍ରୁକୁ ବେଗେ ନାଶ କର ବୋଲି ମନ୍ତ୍ରୀ ଛାଡିଦେଲେ ॥
ଦେଖି କୃଷ୍ଣଚନ୍ଦ୍ର ଧନୁର୍ଧର କରେ ଶର କଲେ ନିବାରଣ ।
ଧନ୍ୟ ରେ କିରାତ ବୋଲିଣ ପ୍ରଶଂସା କରନ୍ତି ତାଙ୍କୁ ମୋହନ ॥

ଏହି ପରକାରେ ଶ୍ରୀକୃଷ୍ଣ ଅର୍ଜୁନ ଯୁଦ୍ଧ କରନ୍ତି ବହୁତ ।
କେ ବିନ୍ଧଇ ଅଗ୍ନି କେ ବନ୍ଧେ ବାରୁଣୀ ପୁଣି କେ ବନ୍ଧେ ମାରୁତ ॥
ଏକକୁ ଆରେକ ବଳିଷ୍ଠ ଅଟନ୍ତି କେହି ନୁହନ୍ତି ନଉନ ।
ବେନି ଜନ ମିଳି ସମର କରନ୍ତି ବହିଗଲା ସପ୍ତଦିନ ॥
ଗର୍ଜିଣ ଅର୍ଜୁନ ମେଘାଶର ଘେନି ଶ୍ରୀକୃଷ୍ଣ ଉପରେ ପେଶି ।
ବଜ୍ରଶକ୍ତିଶର ଘେନିଣ ଶ୍ରୀକୃଷ୍ଣ ବହ୍ନ ଦେଲେକ ନାଶି ॥
କେଶବ ବୋଲନ୍ତି ଶୁଣ ରେ ଶବର ନିଶ୍ଚେ ନେବ ତୋ ଜୀବନ ।
ନୋହିଲେ ମୋହର ଶତ୍ରୁକୁ ସ୍ମଡଣ ପଳାଇ ଯାଅ ବହନ ॥
ଅର୍ଜୁନ ବୋଲନ୍ତି ଶୁଣ ରେ ପାମର ହୋଇଅଛୁ କାରେ ବାଇ ।
ସ୍ଥିର ହୋଇ ତୁ ମୋ ସଙ୍ଗେ ଯୁଦ୍ଧ କର ଗୃତର ଦେବ ଛଡ଼ାଇ ॥

ଏମନ୍ତ କହିଣ କୋପେ ବେନିଜଣ କରନ୍ତି ଘୋର ସମର ।
ନଭଘାତ ନାମେ ଶର ଏକ ଘେନି ବିନ୍ଧିଲେ ଅର୍ଜୁନ ବୀର ॥
ଛପ. ଶର ଆସନ୍ତେ ଘୋର ଅନ୍ଧକାର ନାଶି ଦଶଇ ଆଲୋକ ।
ଆକାଶ ମାର୍ଗରେ ଅର୍ଜୁନ ପ୍ରଶଂସା କରୁଛନ୍ତି ଦେବଲୋକ ॥
ଖରେ ଆସି ଶର ଶ୍ରୀକୃଷ୍ଣ ହୃଦରେ ବାଜିଲା ଯେ ବଜ୍ରପର ।
ବେନି ଘଡ଼ିଯାଏ ଅଜ୍ଞାନ ହୋଇଣ ପଡ଼ିଗଲେ ଯେ ଶ୍ରୀହର ॥
ଚେତା ପାଇ ପୁଣି ଶାରଙ୍ଗ ଧନୁକୁ ଚିନ୍ତା କଲେ ଭବଗ୍ରାହୀ ।
ସୁମରନ୍ତେ ଧନୁ ଶ୍ରୀକୃଷ୍ଣଙ୍କ ହସ୍ତେ ଉପଗତ ହେଲା ଯାଇଁ ॥

ହସ୍ତେ ଧନୁ ଧରି ମହାକାଳ ନାମେ ବାଣ ପେଶି ଜନାର୍ଦ୍ଦନ ।
ମୋହର ଶତ୍ରୁକୁ ରକ୍ଷା କରୁଛି ଯେ ବଧ ତାହାର ଜୀବନ ॥
ମହା ବଳୀୟାର ବିଷ୍ଣୁ ଶର ଅସିବାର ଦେଖି ବୀର ପାର୍ଥ ।
ପଶୁପତି ନାମେ ବାଣକୁ ଅର୍ଜୁନ ପେଶି ବୋଧିଲେ ତୁରିତ ॥
ଶରମାନ ବ୍ୟର୍ଥ ଦେଖି ଜଗନ୍ନାଥ ମନେ ମହାକୋପ ବହି ।
ନିର୍ଘାତ ନାମେଣ ଶର ଘେନି ହସ୍ତେ ତୂଣେ ବସାଇଲେ ନେଇ ॥

ତପନ ସମାନେ ଶର ଆସିବାର ଦେଖି ବାସବ ସନ୍ତ୍ରସ୍ତ ।
ଭୈରବୀ କୁଠାର ଗୁଣରେ ବସାଇ ସେ ଶର ଦେଲେ ନିପାତ ॥
ଏହି ପରକାରେ ବେଳୁଁ ବେଳୁଁ ଯୁଦ୍ଧ ହୋଇଲା ଯେ ଅପ୍ରମିତ ।
ଦୁଇଜଣ ମିଳି ସମର କରନ୍ତି ଦେବଙ୍କୁ ଅଟେ ଅଦ୍ଭୁତ ॥
ନାନା ପରକାରେ ବାଛି ବାଛି ଅସ୍ତ୍ର ପେଷୁଛନ୍ତି ବେନିଜଣ ।
ଶରମାନଙ୍କର ଅଭିଘାତ ଶବ୍ଦେ କମ୍ପୁ ଅଛି ତ୍ରିଭୁବନ ॥
ପୁଣି ଜଗନ୍ନାଥ ହୋଇ ରାଗାନ୍ୱିତ କାଳାନଳ ଶକ୍ତି ପିନ୍ଧି ।
ଚନ୍ଦ୍ରହାସ୍ୟ ଖଡ୍ଗ ଧରି କୁନ୍ତୀ ସୁତ ତାହା ଦକାଇଲେ କାଟି ॥
ଦେଖି କ୍ରୋଧ ହୋଇ ବ୍ରହ୍ମାଣ୍ଡଗୋସାଇଁ କୌମୋଦକ ଗଦାବରେ
ବୁଲାଇ ପିଟନ୍ତେ ଅଗ୍ନି କି ସୁମରି ଧଇଲେ ତା ପାର୍ଥ କରେ ॥
ଆଶ୍ଚର୍ଯ୍ୟ ହୋଇଣ ଶ୍ରୀନନ୍ଦନନ୍ଦନ ପ୍ରଶଂସନ୍ତି ରେ ଶବର ।
ଧନ୍ୟ ଗର୍ଭଧାରୀ ଅଟଇ ରେ ଧନ୍ୟ ଧନ୍ୟ ତୋହର ପିଅର ॥
ଏମନ୍ତ ବୋଲିଣ ବିଷ୍ଣୁ ଶକ୍ତି ଧରି ପେଶିଦେଲେ ଜଗନ୍ନାଥେ ।
ଅଗ୍ନି ସୁମରିଣ ବୀର ଅରଜୁନ ଧଇଲେ ତା ନିଜ ହସ୍ତେ ॥
ଶକ୍ତି ବ୍ୟର୍ଥ ଦେଖି ଭଗ୍ନେ ପଦ୍ମଆଖି ମନେ କରନ୍ତି ବିଚାର ।
ଯେତେ ଶର ମୋର ସବୁ ବ୍ୟର୍ଥ କଲା ଅଟେ କେ ଏ ମାୟାଧର ॥
ଏମନ୍ତ ବିଚାରି ଦେବ ଦଇତାରି ଡାକନ୍ତି ଆରେ କିରାତ ।
କି ନାମ ତୋହର କାହାର କୁମର ଅଟୁ କେଉଁ କୁଳେ ଜାତ ॥
ମୋହର ସଙ୍ଗତେ ସମକକ୍ଷ ହୋଇ ବହୁତ କଲୁ ସମର ।
ଏବେ ଏକ ବାଣ ପେଶୁଛିରେ ପୁଣି ଦେଖି ସମ୍ଭାଳ ଏଥର ॥
ଏତେ କହି ମନଭେଦୀ ଶର ଯେନି ତିଆରି ତାକୁ ପେଶିଲେ ।
ଦୃଷ୍ଟି ମାତ୍ରେ ବୈଶ୍ୱାନରେ ଧ୍ୟାଇ ପାର୍ଥ ବେନିକରେ ତା ଧଇଲେ ॥
ରାଗେ ପାର୍ଥବୀର ବୋଲନ୍ତି ଶବର ତୋର କେଉଁ କୁଳେ ଜନ୍ମ ।
ଯେଉଁ ଶରମାନ କଲୁ ଅବତାର କାହୁଁ ପାଇଲୁ ଏମାନ ॥

ଯେତେ ଶସ୍ତ୍ରମାନ ବନ୍ଧିଲୁ ତୁ ମୋତେ ସେ ସବୁ କଲି ନିପାତ ।
ଏବେ ମୁହିଁ ଏକ ଶର ବନ୍ଧୁଅଛି ସମ୍ଭାଳ ଏହା ତୁରିତ ॥
ଏମନ୍ତ ବୋଲିଣ ତୂଣିରୁ ବହ୍ନ କାଢ଼ି ମନ୍ମୋହନ ଶର ।
ଗୁଣରେ ବସାଇ ବେଗେ ପେଶିଦେଲେ ଘୁମଶରଣ ବୈଶ୍ୱାନର ॥
ଆବର ଶରକୁ ପ୍ରାର୍ଥନା କରଣ କହନ୍ତ ବୀର ଅର୍ଜୁନ ।
ତୋତେ ଅଗ୍ନିଦେବ ସମର୍ପି ଅଛନ୍ତି ମୋତେ ହୋଇଣ ପ୍ରସନ୍ନ ॥
ତୁ ଯାଇ ତୁରିତେ ଶବରର ଗାତ୍ରେ ରୋମେ ରୋମେ ଭେଦ ଯାଇ ।
ଜୀବନରେ ତାକୁ ବିନାଶ ନ କର ପଡଥାଉ ମୋହ ହୋଇ ॥
ଆଜ୍ଞାପାଇଁ ଶର ପବନନ୍ଦୁଁ ଖରେ ପଡଲା ଶ୍ରୀକୃଷ୍ଣ ଅଙ୍ଗେ ।
ଝିଙ୍କ ପକ୍ଷିପ୍ରାଏ ଝଟକ ବିନ୍ଧିଲା ଶର ଭେଦିଣ ସର୍ବାଙ୍ଗେ ॥
ଅଚେତନ ହୋଇ ଅବନୀ ଉପରେ ପଡ଼ିଗଲେ ଦେବରାୟ ।
ତା ଦେଖି ପର୍ବତୁଁ ଉତୁରି ସନ୍ନିଧେ ପ୍ରବେଶିଲେ ଧନଞ୍ଜୟ ॥
ଦେଖିଲେ ତାଙ୍କର ନୀଳ କଳେବର ମୁଖ ନିଷ୍କଳଙ୍କ ଶଶୀ ।
ପରାୟେ ଉଜ୍ଜ୍ୱଳ ଆବର ହୃଦରେ କଉସ୍ତୁଭ ମଣି ଦିଶି ॥
ଶିର ହାଣିବାକୁ ହସ୍ତେ ଖଡ୍ଗ ଥିଲା ଦେଖି ନ ବଳିଲା ଚିତ୍ତ ।
ସଭୟେ ଶତଧନୁକୁ ପାଶେ ଡାକି ପୁଛିଲେ ସର୍ବ ଉଦନ୍ତ ॥
କାହାର ଭୟରେ ମୋର ସନ୍ନିଧିରେ ତୁହି ପଶିଲୁ ଶରଣ ।
ବିସ୍ତାରିଣ ସର୍ବ କଥା କହ ମୋତେ କରିବ ତାହା ଶ୍ରବଣ ॥
ଅର୍ଜୁନ ବଚନେ ଶତଧନୁ ଭୟେ କହେ ଯୋଡ଼ି ବେନିକର ।
ସେ ବୃତ୍ତାନ୍ତ ଏବେ କହୁଛି ଶୁଣିବା ହେଉ ଶରଣପଞ୍ଜର ॥
ସତ୍ରାଜିତ ସୂର୍ଯ୍ୟଦେବେ ସେବାକରି ପାଇଥିଲେ ରତ୍ନମଣି ।
ତାକୁ ନାଶକରି ସ୍ୟମନ୍ତକ ମଣି ଘେନାଇ ଆଣିଲି ପୁଣି ॥
ଶୁଣି ନରହରି ମହାକ୍ରୋଧ କରି ମୋତେ ନାଶିବାର ଅର୍ଥେ ।
ଗୋଡ଼ାଇଲେ ଯନ୍ତୁ ତାହାଙ୍କ ଭୟରେ ଶରଣଗଲି ମୁଁ ତୋତେ ॥

ମୋର ପୂର୍ବ ପୁଣ୍ୟବଳୁଁ ତୋ ଚରଣ ମୋତେ ଯେ ଭେଟ ହୋଇଲା
ତୋର ସଙ୍ଗେ ଯୁଦ୍ଧ କରି ପଡ଼ିଛନ୍ତି ପ୍ରତ୍ୟକ୍ଷରେ ନନ୍ଦବଳା ॥
ଶତଧନୁଠାରୁ ଏସନ ବଚନ ଶୁଣିକରି ବୀରପାର୍ଥ ।
ଧନୁଶର ଥୋଇ ଗୋବିନ୍ଦଙ୍କୁ କୋଳେ ଧରିଲେ ଯାଇଁ ତୁରିତ ॥
ଦେଖିଲେ ସର୍ବାଙ୍ଗେ ଶର ଭେଦିଅଛି ତିଳେ ମାତ୍ର ନାହିଁ ସ୍ଥାନ ।
ଶର ଓଟ୍ଟାରଣ ଔଷଧ ଲେପନ୍ତେ ଚେତା ପାଇଲେ ମୋହନ ॥
ଭୟେ କୁନ୍ତୀସୁତ ଅସ୍ଥିର ହୋଇଣ ଗୋବିନ୍ଦ ଚରଣ ଧରି ।
ବୋଲନ୍ତି ଏ ଦାସ ଦୋଷ କ୍ଷମାକର ଆହେ ଦେବ ଦଇତାରି ॥
ନ ଜାଣିଲି ଦୋଷ କ୍ଷମ ପୀତବାସ ମୁଁ ତୋ ସମ୍ବଳର ଧନ ।
ନମୋ ନମୋ ପ୍ରଭୁ ଅଖିଳର ନାଥ ନମୋ ବ୍ରହ୍ମାଣ୍ଡ କାରଣ ॥
ଏସନ ଅନେକ ପ୍ରକାରେ ଅର୍ଜୁନ ଶ୍ରୀହରିଙ୍କୁ ସ୍ତୁତିକଲା ।
ଶିରେ କରଦେଇ ସାଷ୍ଟାଙ୍ଗ ହୋଇଣ ଚରଣରେ ପ୍ରଣମିଲା ॥
ଅର୍ଜୁନ ବଚନ ଦେଖି ଦାଶରଥି ତାଙ୍କୁ କଲେ ଆଶ୍ୱାସନା ।
ତୁମ୍ଭର ଆମ୍ଭର ଏକ ଆତ୍ମା ଯେଣୁ କିମ୍ପା ହେଉଛ ବିମନା ॥
କାହା ବଳ ଏତେ ଏ ତିନ୍ଯୁ ଜଗତେ ସଂଗ୍ରାମେ ଜିଣି ପାରିଇ ।
ମୋର ପଞ୍ଚଭୂତ ଅଟୁ ଯେଣୁ ମୋତେ ସଂଗ୍ରାମେ ଜିଣିଲୁ ତୁହି ॥
ଏବେ ଯାହା ଇଚ୍ଛା ବର ମାଗ ତୁହି ହେଲି ମୁଁ ତୋତେ ପ୍ରସନ୍ନ ।
ଏମନ୍ତ ବୋଲିଣ କୋଳରେ ବସାଇ ପୁଣି କଲେ ଆଲିଙ୍ଗନ ॥
ପାର୍ଥ ବୀରବର ଯୋଡ଼ ହସ୍ତକରି ବୋଲେ ହେ ପଙ୍କଜମୁଖ ।
ଯେବେ କଲ ଦୟା ଦେଇଁ ପଦଛାୟା ଶତଧନୁ ପ୍ରାଣ ରଖ ॥
ପାର୍ଥର ବଚନ ଦେଖି ଶ୍ରୀପତି ବୋଇଲେ ରେ ଶତଧନୁ ।
ଅନ୍ନହୁଁ ଅଭୟ ଦେଲୁ ଆମ୍ଭେ ତୋତେ ଭୟ ଛାଡ଼ି ତୋର ମନୁ ॥
ଶ୍ରୀକୃଷ୍ଣଙ୍କଠାରୁ ଅଭୟ ପାଇଣ ଶତଧନୁ ଆନନ୍ଦ ହୋଇ ।
ହସ୍ତକରି ଯୋଡ଼ ପଦ୍ମପାଦ ତଳେ ପଡ଼ି ଲୋଟଇ ଭୂମିରେ ॥

ଅହେ ଜଗନ୍ନାଥ ଅନାଥର ନାଥ କରୁଣାସାଗର ହରି ।
ଅଶେଷ ମହିମା ଅଟଇ ତୁମ୍ଭର ଅହେ ଦେବ ଦଇତାରି ॥
ଲାଜେ ଶତଧନୁ ଅଭିମ୍ୟୁ ପାଳିଣ ବୋଲଇ ହେ ବାସୁଦେବ ।
ଅଶେଷ ମହିମା ଅଟଇ ତୁମ୍ଭର ବୋଲି କଲେ ନାନା ସ୍ତବ ॥
ଶ୍ରୀକୃଷ୍ଣ ମହିମା ପରମ ପବିତ୍ର ଶୁଣି ପରୀକ୍ଷିତ ରାଜା ।
ଆନନ୍ଦିତ ହୋଇ ମୁନିଙ୍କ ଚରଣେ କଲେ ବହୁମତେ ପୂଜା ॥
ଶ୍ରୀକୃଷ୍ଣ ଅର୍ଜୁନ କଳି ଉପାଖ୍ୟାନ ଶ୍ରବଣ କରେ ଯେ ନର ।
ଭବବାଧା ତାକୁ କିଛି ନ ଲାଗଇ ନ ଥାଇ ଯମର ଡର ॥
ଭକତବତ୍ସଳ ଅନାଥର ନାଥ କୃପାମୟ ଭାବଗ୍ରାହୀ ।
ଭଣେ ଗୋପୀନାଥ ଦୀନ ଅକିଞ୍ଚନ ବାରେ ମୋତେ କର ଚାହିଁ ॥
ତୁମ୍ଭ ବିନୁ ମୋର ଅନ୍ୟ କେହି ନାହିଁ ବନ୍ଧୁବାନ୍ଧବାଦି ଜନ ।
ଏ ଭବସାଗରୁ ଶୀଘ୍ର ପାରିକର ଅହେ ପ୍ରଭୁ ଭଗବାନ ॥
ଏତିକି ମାଗୁଣି ମୋର ପଦ୍ମପାଦେ ଅହେ ଦୀନବନ୍ଧୁ ହରି ।
ଯାଉ ମୋର ପ୍ରାଣ ହେ କଞ୍ଜନୟନ ନାରାୟଣ ନାମ ସ୍ମରି ॥



✻ ସମାପ୍ତ । ✻

☞ ହୋମିଓପ୍ୟାଥିକ ଡାକ୍ତର ଶ୍ରୀ ଅଭିନ୍ନଚନ୍ଦ୍ର ରାଉତଙ୍କ
ନାରାୟଣ ପ୍ରେସରେ ମୁଦ୍ରିତ ।

# ବିଜ୍ଞାପନ ।

ନୂତନ ! ନୂତନ !! ନୂତନ !!!

## ଉତ୍କଳ କହାଣୀ ଦର୍ପଣ ।

ପ୍ରକାଶିତ ହୋଇଅଛି    ମୂଲ୍ୟ ଟ ° ୫

ଏହି ନାମରେ କେତେକ ଖଣ୍ଡ କାହାଣୀ ପୁସ୍ତକ ଏଥିପୂର୍ବରୁ ପ୍ରକାଶିତ ହୋଇଅଛି, ମାତ୍ର ତାହା ତୁଳନାରେ ଏହା କାଚ କାଞ୍ଚନ ତୁଲ୍ୟ ଆଦରଣୀୟ ହୋଇଅଛି । କଥାଗୁଡ଼ିକ ସମ୍ପୂର୍ଣ୍ଣ ନୂତନ ଓ ସାର୍ବଜନିକ ଅଟେ । ଖାଣ୍ଟି ଓଡ଼ିଆ ମାତୃଭାଷାରେ ଲିଖିତ ଓ ଗୋ ୨୪ ଟି କାହାଣୀରେ ବିଭୂଷିତ ହୋଇଅଛି । ନିଜର ଆତ୍ମୀୟ ବନ୍ଧୁ ବାନ୍ଧବମାନଙ୍କୁ ଉପହାର ଦେବା ନିମିତ୍ତ ଏହା ଅଦ୍ୱିତୀୟ ଅଟେ । କାଗଜ ଛପା ଉତ୍କୃଷ୍ଟ । ପୁସ୍ତକ ଖଣ୍ଡେ ଦେଖିଲେ ଜାଣି ପାରିବେ ।

ଅନ୍ୟ କୃତ କାହାଣୀ କ୍ରୟ କରିବା ପୂର୍ବରୁ
ଥରେ ଏହା ଦେଖନ୍ତୁ ।

ପତ୍ର ଦେବା ସମୟରେ "ଶ୍ରୀ ଲାଲା ଗୋପୀନାଥ ଗୁପ୍ତଙ୍କ ପ୍ରଣୀତ ଉତ୍କଳ କାହାଣୀ ଦର୍ପଣ ପଠାଇବେ" ବୋଲି ଲେଖିବା ହେବେ । ନଚେତ୍ ଅନ୍ୟକୃତ ପୁସ୍ତକ ପାଇ ଶେଷକୁ ମନଃଯାତନା ଭୋଗ କରିବେ ।

ଏକମାତ୍ର ପ୍ରାପ୍ତିସ୍ଥାନ—
ଶ୍ରୀ ରାଧାକୃଷ୍ଣ ବସୁ ଏମ୍, ଏ,
ମାଣିକ ଘୋଷ ବଜାର;
ପୋଃ ଅଃ ଗୃନ୍ଦନୀଚଉକ;
କଟକ ।

PRINTED BY HOMOEOPATHIC DR. A. C. RAO.
AT THE NARAYAN PRESS, CUTTACK 1925